# ଯଦୁମଣି ରହସ୍ୟ



ଭଜନ—ରାଗ—ପୂରବୀ

ମାନସ ! ଚକାନୟନଙ୍କୁ ଡକା   ନାଳିକ ବନ୍ଧୁଜ ନାଳନେତ୍ର
ତେଜ କରାଇ ପାରନ୍ତି ଫକା । ପଦ ।

ଯାହା ବଜେ ଭୁଜେ ପଡ଼ି ଗୁଣ୍ଡିଭୁଜେ ବାହାରେ ବାଲୋପେ କକା, ଦର୍ଶନ ମାତ୍ରକେ, କେ ଅଘଳଙ୍ଘନ, କଲେ ମଧ୍ୟବାଣ କକା ।୧। ପଶ୍ଚ-ଡର୍ଫକେ ଦୁଷ୍ଟପଣ ସର୍ପକେ ଦୁଷ୍ଟ ରାଉଁ ଷଣ୍ଢ ବକା-ଯୁଗଳ ବଧାତେ ସର୍ବ୍ବବର୍ଜିଦେଲେ ଅର୍ଜ୍ଜିତ ବ୍ରଜନନ୍ଦକା ।। ବାକା ବଜା ରାଜା ପାପୀ ଅଜା ମିଳ ପୁତ୍ରକୁ ଡାକିଲା ଡକା, ଗରିଷ୍ଠ ନଷ୍ଟ ଦୁରିତ ପାପିଷ୍ଠୁକୁ ଭୁରିତେ ମାଇଲେ ଧକ୍କା ।। ନନ୍ଦା ସ୍ତୁତି ଭକ୍ତ ଧେନୁ ମୁକ୍ତ ଦେବା ଶକ୍ତମନ୍ତ୍ରେ ଜାଣେ ପକ୍କା, ଚେଦି ରାଜପୁତ୍ର ନଦୀଜ ପବନ ପାତ୍ରକୁ ଯେ କଲେ ଏକା ।। ଯଦୁମଣି ଭଣେ କଳ୍ପ କର୍ମ ଗୁଣେ ରଖିବେ ନାହିଁ କଡ଼କା । ନୀଳାଚଳ ଚଳେ ନୀଳଚକ୍ରେ ଚଳେ ପାପୀପାବନ ଫଡ଼କା । ୫ ।



(୨) ଏକଦିନ ଯଦୁମଣିଙ୍କୁ ଜଣେ ଅପରିଚିତ ଲୋକ ପରିଚୟ ମାଗିବାରୁ ସେ ଗୋଟିଏ କ୍ଷୁଦ୍ର କବିତା ଦ୍ୱାରା ଆପଣାର ସବୁ ବିଷୟ ଜଣାଇ ଦେଇଥିଲେ । ତାହା ଏହି "ହୟଗ୍ରୀବ ମହାପ୍ରଭୁ ପ୍ରତାପେ ଥୋଡ଼ାନୁହେ, ଲୋଡ଼ା କରନ୍ତି ନୃପେ । ଭଲେ ଭଲ ଖଣ୍ଟେ ଖଣ୍ଟେ ଯେ । ନବ ଦୁର୍ବାଦଳ ଶ୍ୟାମଳ କୃପାରେ ମୋ ନାମ ଉଜ୍ଜ୍ୱଳ ଘଣ୍ଟେ ଯେ ।" ଏହାର ଭାବ ଏହି ଯେ ମୁଁ ହୟଗ୍ରୀବ ମହାପ୍ରଭୁଙ୍କ ପ୍ରତାପରୁ ସାମାନ୍ୟ ଲୋକଙ୍କର ଦ୍ୱାରା ଆଦୃତ ହୁଅଇ ଏବଂ ଭଲ ବ୍ୟକ୍ତି ସହିତ ଭଲ ଆଚରଣ ଏବଂ ଖଣ୍ଟ ସହିତ ଖଣ୍ଟ ଆଚରଣ କରଇ, ଆଉ ସେହି ପ୍ରଭୁଙ୍କ ଦୟାରୁ ମୁଁ ଓଡ଼ିଶାରେ ବିଖ୍ୟାତ ହୋଇଛି ।

(୩) ଯଦୁମଣିଙ୍କ ବୃଦ୍ଧାବସ୍ଥାରେ ଜଣେ ତାଙ୍କୁ ପଚାରିଲେ, ଆଉ ଅଠଗଡ଼ ଯିବନାହିଁକି ? ତହୁଁ ସେ କହିଲେ, "ଭାଠଗଡ଼ ତ ଖୋଳିଲଣି, ଅଠଗଡ଼ କାହିଁକି ଯିବି ?"

(୪) ଏକଦିନେ ରଣପୁର ରାଜା ଯଦୁମଣିଙ୍କୁ ପଚାରିଲେ, ମହାରଥୀଙ୍କ ସ୍ତ୍ରୀଙ୍କୁ ଦେଖିଅଛ ? 'ମହିମା ଦେଖିଛୁ' । କି ପ୍ରାୟେ ଦେଖିଲ ? ତହୁଁ ଯଦୁମଣି ତତ୍‌କ୍ଷଣାତ୍ ନିମ୍ନଲିଖିତ କବିତାଟି ଦ୍ୱାରା ଜଣାଇଲେ—

"ଦୁଆର ଦେହଲି ଜୁଳକା ଧରଣି ବାଳି ପଡିଥିଲି ଓଳିକା, ଦେଖିଲି କାଳିକା ଲଢିଲି ଭେଳିକା ଚଳିଲି ମଦନ ଶୂଳିକା । ମହିମା । ତା ଭୃତା କେତେ ତପ କରିଛୁ । ଓଳିକା ଓଳିକା ହୋଇଣ କାଳିକା କାଳକେ କାଳିକା ପାଇଛୁ ।"

(୫) ଦିନେ ରାଜା ଯଦୁମଣି ଓ ହରେକୃଷ୍ଣ ପଟ୍ଟନାୟକ କବି ପ୍ରଭୃତି କେତେଜଣ ବସିଥିବା ସମୟରେ ଗୋଟିଏ ବେଶ୍ୟା କୌଣସିଠାରୁ ଆସି ରାଜାଙ୍କ ସହିତ ସାକ୍ଷାତ କଲା । ରାଜା ଦେଖିଲେ ସେ ବେଶ୍ୟା ବାମ କରତଳକୁ ହରଗଉରୀ ରଙ୍ଗରେ ପଗାଇଅଛି । ବେଶ୍ୟା ଗଲାପରେ ରାଜା, ହରେକୃଷ୍ଣ ପଟ୍ଟନାୟକଙ୍କୁ କହିଲେ, ସେ ବେଶ୍ୟା ହାତ ପଗାଇବା ବିଷୟକୁ ଲକ୍ଷ୍ୟ କରି ଗୋଟିଏ କବିତା ବୋଲ ? ତହୁଁ ହରେକୃଷ୍ଣ ନିମ୍ନୋକ୍ତ କବିତା ରଚନା କଲେ—

'କି ରଙ୍ଗରେ ହରଗଉରୀ ରଙ୍ଗରେ ଅଙ୍ଗନା ବାମ କରତଳ, ଚୋପି ଚୋପି କରି ପଗାଇଅଛି ଯେ ଦିଶୁଅଛି କେଡ଼େ ମଞ୍ଜୁଳ ସଙ୍ଗାତ, କି ଅବା ଫୁଲଶର ସ୍ମର । ବନ୍ଧିବା ବେଳରେ ଶିବ୍ୟେ ଅଣ୍ଡଦେଲ ତେଣୁ ଏ ରୁଧିର ବାହାର ।

ଯଦୁମଣି ଏହାଶୁଣି କହିଲେ, ଭାବ କରୁଛି ଭଲ ହେଲା ନାହିଁ ରାଜା ଯଦୁମଣିଙ୍କୁ କହିଲେ, 'ତୁମ୍ଭେ ବୋଲ ?' ତାହାଶୁଣି ଯଦୁମଣି ନିମ୍ନୋକ୍ତ କବିତା ତତ୍‌କ୍ଷଣାତ୍ ବୋଇଲେ—

"ମନଭେଦୀ ସିନା କୁସୁମ ଶର । କାହିଁ ଭର କାହିଁ ଆତୁରା

କର ଏମନ୍ତ ଧୀଷଣା ଦୁର୍ଦ୍ଦିନରେ ବୁଦ୍ଧି, ଜଗନ୍ନାଥ ପ୍ରକଟାବେ ଦେଖି ।
ବନ୍ଧନ୍ତୁ କା ପ୍ରାଣ, ତୋ ମୁଖ ଭିତର ରକ୍ତବନ୍ଦ ବାହାର ।’

(୬) ଜଣେ ବେଶ୍ୟା ନିକଟକୁ ଯଦୁମଣି ଯିବା ନିମନ୍ତେ ସ୍ଥିର କରିଥିଲେ । ବେଶ୍ୟା ମଧ୍ୟ ନିର୍ଦ୍ଦିଷ୍ଟ ସମୟରେ ଆସିବ ବୋଲି ଜବାବ କରିଥିଲା । ସେହି ସମୟରେ ଯଦୁମଣି ଉପସ୍ଥିତ ହେବାରେ ବେଶ୍ୟା ଅନ୍ୟ ଏକ ପୁରୁଷ ସହିତ ସହବାସରେ ଥିଲା । ଯଦୁମଣି ଡ଼ାକିବାରେ ସେ କୌଣସି ମତେ କବାଟ ଫିଟାଇଲା ନାହିଁ । ତହିଁ ଆରଦିନ ବେଶ୍ୟା ସହିତ ଯଦୁମଣିଙ୍କର ସାକ୍ଷାତ ହେବାରେ ଯଦୁମଣି ନିମ୍ନୋକ୍ତ କବିତା ଦ୍ୱାରା କହିଲେ—“ଜାଣୁ ଜାଣୁ ଖଣାରେ ମୁଁ ପଡ଼ିଲି ରେ, ଜଣା ଶୁଣା ସରଣୀ ଯେ ଭୁଲିଲିରେ । ଉଣା ଟିଣା ବୁଦ୍ଧିରେ, ଚେତିଲି ଘଣା ମଧ୍ୟରେ, ଚଣା ପେଷାଇ ବଣା ଅଡ଼ିଲିରେ ॥ ଯତି ଜପ ଧ୍ୱଂସତ, କରିବା ରସବତୀ, ସତୀନାୟିକା ସଙ୍ଗ ଛାଡ଼ିଲିରେ ॥ ନିପଟ ମରକଟି ବଜାର ନାହାକାଟି, ପାଦାନ୍ତ ସରେମୁଣ୍ଡ ମାଡ଼ିଲିରେ ॥ ବହୁକାଳ ସୁରଙ୍ଗ, ପାତାଳଫୁଟା ଲିଙ୍ଗ ଶିରେ ବାନ୍ଧୁଣୀଆଣି ଢ଼ାଳିଲିରେ ॥ କୁଶଳ କଥା ମୋର ମୁସଲମାନ ଚିର, ଗାଣ୍ଡିକ କରପଦ ଯୋଡ଼ିଲିଲେ ॥ ରାତିଟି ଉଜାଗର, ନିଦ୍ରାରେ ଗରଗର, ହୋଇ ମୁଁ ଉଚ୍ଚେ ଯେତେ ଡ଼ାକିଲିରେ ॥ ନ ଶୁଣିଲେ ମୋ ଚିର, ଯଦୁମଣି ଉତ୍ତର, କର୍ମ ଦୋଷରୁ ଏହା ବଳିଲିରେ ।”

(୭) ଯଦୁମଣି ଥରେ ଦଶପଲ୍ଲା ଯାଇଥିଲେ । ସେଠାରେ ରାଜା ଯଦୁମଣିଙ୍କୁ ଅନାଦର କରିବାରେ ଯଦୁମଣି ବଡ଼ ବ୍ୟଥିତ ହେଲେ । ସେହି ସମୟରେ ଜଗନ୍ନାଥଙ୍କ ପ୍ରତିମୂର୍ତ୍ତି ପ୍ରତିଷ୍ଠା ହୋଇ ସିଂହାସନରେ ବିଜେ ହେଲାରୁ ରାଜା ଜଗନ୍ନାଥଙ୍କ ଦର୍ଶନକୁ ଗଲେ । ଯଦୁମଣି ମଧ୍ୟ ସଙ୍ଗରେ ଯାଇଥିଲେ । ସେଠାରେ ଯଦୁମଣି ଜଗନ୍ନାଥଙ୍କୁ ନିମ୍ନଲିଖିତ ରୂପେ ସ୍ତବ କଲେ—

“କୁଞ୍ଜବନେ ଜଗନ୍ନାଥ ନ ହେବ ଗୋସାଇଁ,
ରଥ ବୋଲି ଭଣ୍ଡି ନେବେ ଶଗଡ଼େ ବସାଇ ।

ଭୋଗ ବୋଲି ଖଞ୍ଜି ଦେବେ କଢ଼ିକିଆ ମୁଆଁ
ଧୂପ ବୋଲି ମାଡଦେବେ ନିଆଁ ଖଣ୍ଟା ଧୂଆଁ ।"

ଏହାଶୁଣି ରାଜା ଲଜ୍ଜିତ ହୋଇ ଯଦୁମଣିଙ୍କୁ ବହୁ ଅର୍ଥଦାନ କରି କହିଲେ—ଯଦୁମଣି, ତୁମ୍ଭେ କବି ଅଟ । ଆମ୍ଭ ନାମରେ କେତେ ଗୁଡଏ, ଚଉପଦୀ ରଚନା କର ।" ଯଦୁମଣି କହିଲେ, 'ଆଜ୍ଞା କାଲି ସକାଳୁ ପଣେ ଚଉପଦୀ ଆଣିଦେବି ।' ଏହା କହି ଆପଣା ବସାରେ ଶାଳୁଆ ପନ ଠୋଲି ତିଆରି କରି ବୋଇଟେ ରାଜାଙ୍କ ନିକଟକୁ ପଠାଇଦେଲେ । ରାଜା ଚଉପଦୀର ଅର୍ଥ ବୁଝିପାରି ମନେ ମନେ ହସି ବିଶେଷ ପ୍ରୀତ ହେଲେ ।

(୮) ଅନ୍ୟ ଦିନେ ଯଦୁମଣି ରଣପୁର ରାଜାଙ୍କ ନିକଟକୁ ଯାଇଥିଲେ । ରାଜା ତାଙ୍କର ବସା, ସଞ୍ଚା, ଶୀଘ୍ର ବନ୍ଦୋବସ୍ତ କରି ନ ଦେବାରୁ ଯଦୁମଣି କ୍ଷୁଧାରେ ଆକୁଳ ହୋଇ ରାଜାଙ୍କୁ କହିଲେ—

ପ୍ରାଣରେ ବସିଣ ବଚନେ ଭସିଲି କିଣାମୁଁ ଆପଣଙ୍କର,
ମୁଣ୍ଡରେ ମାଇଲେ ତୁଣ୍ଡରେ ନ ବୋଲି କିଣା ମୁଁ ଆପଣଙ୍କର ।
'ପଣିକର କି ଅଧିକର ।'



(୯) ଏକଦିନେ ନୟାଗଡ଼ ରାଜା ଯଦୁମଣିଙ୍କୁ କେତେ ଟଙ୍କା ଦେଇ ମିଠା କିଣିବା ନିମନ୍ତେ ପଠାଇଲେ । ରାଜାଙ୍କ ଆଦେଶାନୁସାରେ ଏକ ଯୋଡ଼ା ମଠା ଖରିଦ କରି ତହିଁର ଅର୍ଦ୍ଧେକ ଦାମ ମହାଜନଙ୍କୁ ଦେଲେ । ବାକି ଅର୍ଦ୍ଧେକ ଦାମ ଦି ୧୫ ନ ମିଆଦରେ ଦେବାକୁ କବୁଲ କରି ଆସିଲେ, ଉକ୍ତ ମଠା ରାଜାଙ୍କୁ ଦେଇ ଅବଶିଷ୍ଟ ଦାମ ମାଗିବାରୁ ରାଜା ୨।୩ ଟା ଆମ୍ବ ତୋଟା ଯଦୁମଣିଙ୍କ ଜିମା କରି କହିଲେ, 'ଆମ୍ଭ କିଛି କ୍ଷତି କରିବି ନାହିଁ । ଏହା ବିକି ହୋଇ ଏଥିରୁ ଉତ୍ପନ୍ନ ତୁମ୍ଭଙ୍କୁ ମଠା ଦାମ ସକାଶେ ଦିଆଯିବ ।' ତହୁଁ ସେ ବଗିଚାରେ ଆମ୍ବ ପାଚିଲା । ଯଦୁମଣି ସେ ଆମ୍ବକୁ ତାଙ୍କର ପ୍ରିୟ ବନ୍ଧୁ ବାନ୍ଧବ ଯେ କେହି ଆପଣାର ଥିଲେ ତାଙ୍କ ନିକଟକୁ

ପଠାଇଲେ । ଏ ସମ୍ବାଦ ରଜା ଡ଼ଗର ଦ୍ୱାରା ପ୍ରାପ୍ତ ହୋଇ ମନରେ ବିଗାଡ଼ିତ ଭାବରେ ଯଦୁମଣିଙ୍କୁ ଶାସ୍ତି ଦେବାପାଇଁ ଧରାଇ ନେଲେ, ତହୁଁ ଯଦୁମଣି ନିମ୍ନୋକ୍ତ କବିତାଟି ରଜାଙ୍କ ସମ୍ମୁଖରେ ଜଣାଇଲେ—

"ମୋଠାରେ ଦୟା କାଠାରେ ନାହିଁ, ଠୋଠା ଉପବାସ କିହି ନୁହଇ ; ମଠା ବକି ବା ତୋଷା ଅଧିକାର, କିହି ନୁହେ ଦୁଃଖ ନିଶି ବାସର ।

"ଫଷା କପାଳରେ, ସୋଠା ଯା ଲେଖିଲା ବିହି ମୋଠାରେ ।"

ଏହା ଶୁଣି ରଜା ବହୁତ ପ୍ରୀତ ହୋଇ ଯଦୁମଣିଙ୍କୁ ପୁରସ୍କାର ଦେଲେ ।

(୧୦) ଏକଦିନେ ଯଦୁମଣି ବଡ଼ମ୍ବା ରଜାଙ୍କ ନିକଟରେ ପହୁଞ୍ଚିଲେ । ରଜା ତାଙ୍କୁ ଦେଖି ତାଙ୍କର ରହିବା ନିମନ୍ତେ ତୃଣୀପୁ ପାଟଣା ନାମକ ସ୍ଥାନକୁ ବିଦାୟ ଦେଲେ । ସେ ସ୍ଥାନରେ ଦୋକାନୀକୁ ବିଦାୟ ଦେଲେ—ଘୃତ ଗୁଡ଼ ଅଟ୍ଟ ଯାହା କିଛି ଦ୍ରବ୍ୟ ଯଦୁମଣିଙ୍କର ଦରକାର ହେବ ତାହା ଦେବ । ଯଦୁମଣି ସେ ସ୍ଥାନକୁ ଯାଇ ସେ ଦୋକାନୀଠାରୁ ରୋଷେଇର ସମସ୍ତ ସାମଗ୍ରୀ ଆୟୋଜନ କଲେ । କିନ୍ତୁ ସେ ଘୃତ ନ ଦେବାରୁ ଯଦୁମଣି ରାଜାଙ୍କ ନିକଟକୁ ଘୃତମଗାଇ ପଠାଇଲେ । ତହୁଁ ଉଆସରୁ ଯେ ଘୃତ ଦେଲେ ସେଥିରେ ଘୋଡ଼ା ଚେହା ମିଶ୍ରିତ କରି ଯଦୁମଣିଙ୍କ ଭୋଜନ ନିମନ୍ତେ ପଠାଇଲେ । ଯଦୁମଣି ଉକ୍ତ ଘୃତକୁ ଦେଖି କାଠ ପତ୍ରରେ ଏକ ଗୋଟି ଦନା ତିଆରି କରି ତହିଁରେ ରଖି ସେ ଗିନାକୁ ଦୋକାନୀ ନିକଟରେ ବନ୍ଧା ଦେଇ ତାହାଠାରୁ ଘୃତ ନେଇ ରନ୍ଧାକାର୍ଯ୍ୟ ନିର୍ବାହ କଲେ । ରାଜା ଯେଉଁ ଘୃତ ଦେଇଥିଲେ ସେ ଘୃତ ପକା ନାସ ଏକ ଦାନି ପ୍ରସ୍ତୁତ କରି ଆପଣା କମରରେ ରଖିଲେ ଓ ଅନ୍ୟ ଏକ ଦାନି ନାସରେ ଅତର ଅଦି ସୁବାସ ସାମଗ୍ରୀ ପକାଇ ତାକୁ ଶୁଙ୍ଘି ଶୁଙ୍ଘି ରାଜାଙ୍କ ନିକଟକୁ ସାକ୍ଷାତ କରିବାକୁ ଗଲେ । ରାଜା ଯଦୁମଣିଙ୍କୁ ଦେଖି ପ୍ରଶ୍ନ କଲେ, ଏବେ ନାସ ଅଭ୍ୟାସ କଲଣିକି ? ଭଲ ଖୁସୁବୋଇ ଦ୍ରବ୍ୟ ହୋଇଅଛି, ଆଣ ଆମ୍ଭକୁ ଟିପେ ଦିଅ ।" ତହୁଁ ଯଦୁମଣି

କହିଲେ—"ଏ ଦାନ୍ତ ସୁଙ୍ଘିବା ଦ୍ୱାରା ମାରା ହୋଇଅଛୁ । ଆପଣ ଗ୍ରହିବେ, ଏଥି ଯୋଗେ ନୂତନ ନାସ ଏକ ଦାନ୍ତ ପ୍ରସ୍ତୁତ କରି ଅଣିଛୁ । ଏହା କହି ଆପଣା କମରରେ ଥିବା ଦାନ୍ତକୁ ରାଜାଙ୍କୁ ଦେଲେ, ତହୁଁ ରାଜା ନିଜେ କିଛି ଆଘ୍ରାଣ କରି ତାଙ୍କ ନିକଟରେ ଥିବା ଅନ୍ୟାନ୍ୟ ଅମାତ୍ୟମାନଙ୍କୁ ଟିପେ ଟିପେ ଆଘ୍ରାଣ କରିବାକୁ ଦେଲେ । ଯେ ଶୁଙ୍ଘିଲେ ସେ ଏଗୁଡ଼ାକ କି ପଦାର୍ଥ ବୋଲି ବ୍ୟସ୍ତବ୍ୟସ୍ତ ହେଲେ । ରାଜାଙ୍କର ଓକାର ହେଲା । ତହୁଁ ରାଜା ଯଦୁମଣିଙ୍କୁ ପ୍ରଶ୍ନ କଲେ—ଯଦୁମଣି । ଏ ଗୁଡ଼ିକ କିସ ତୁମ୍ଭେ ସତ କହ । ତହୁଁ ଯଦୁମଣି ରାଜାଙ୍କୁ ନିମ୍ନଲିଖିତ କବିତା ଦ୍ୱାରା ଜଣାଇଲେ ।

"ଚନ୍ଦ୍ର ତୁମ୍ଭେ ସିନା ଖନ୍ଦା ଦେଇଥିଲ ତୃତୀୟ ପାଟଣା ଅଜ ।
ଗିନା ବନ୍ଧା ଦେଇ ଖନ୍ଦା ଚଳାଇଲ ଗନ୍ଧସୁଙ୍ଘା ମଙ୍ଗରାଜ ॥

( ବଡ଼ମ୍ବା ପାଟଣାରେ ତୃତୀୟ ପାଟଣା ବୋଲି ଏକ ମୌଜା ଅଛୁ )

(୧୧) ଯଦୁମଣି ଗୋଟିଏ ଶ୍ରେଷ୍ଠ ବସ୍ତ୍ର ପ୍ରତିମାରେ ଅନେକ ପାଟକନା ଗୁଡ଼ାଇ ସ୍ଥୁଳାକୃତ କରି ରଣପୁର ରାଜାଙ୍କୁ ଭେଟିଲେ । ରାଜା ସ୍ୱହସ୍ତରେ ଦୁଇ ଗୃହଖଣ୍ଡି କନା ପିନ୍ଧାଇଲେ । ମାତ୍ର ଯଦୁମଣିଙ୍କ ଠକ ସ୍ୱଭାବ ଜାଣିଥିବାରୁ ମନରେ ଭାବିଲେ, ଏ ଆମ୍ଭମାନଙ୍କୁ ଠକାଇବାକୁ ଆସିଅଛି, ଏଣୁକରି ତାହା ତଳରେ ଥୋଇ ଦେବାରୁ ଯଦୁମଣି ଏହି କବିତାଟି ପାଠକଲେ—

"ଅନ୍ଧ ଦେଶକୁ ଗଲ ଦର୍ପଣ ବିକି, କନ୍ଧ ହାତରେ ଦେଲ ଗୋଦାନ ଟେକି । ଜଡ଼ା ମଧ୍ୟରେ ଖଡ଼ା କଲ ରନ୍ଧନ, ଜାମୁକା ଘୋଡ଼ା ମୁଖେ ଦେଲ ଚୁମ୍ବନ ।

"ହେ ରାଜା କି କଲ, ବସ୍ତ୍ର ପ୍ରତିମାକୁ ତଳେ ଥୋଇଲ ।"

ଯଦୁମଣି ରଣପୁର ରାଜାଙ୍କୁ ଲକ୍ଷ୍ୟକରି ଉପରୋକ୍ତ କବିତାଟି ବୋଲିବାରୁ ରାଜା ଯଦୁମଣି ଉପରେ ବିରକ୍ତ ହେଲେ । ସୁତରାଂ

ଯଦୁମଣି କେତେ ବରଷ ରଣପୁର ଗଲେ ନାହିଁ । ପରେ ନିମ୍ନୋକ୍ତ କବିତାଟି ଲେଖି ନାତୁଣୀ ଜୁଆଇଁ ହାତରେ ରଣପୁର ରାଜାଙ୍କ ନିକଟକୁ ପଠାଇଲେ ।

"ମଣି ଫଣି ଭବ ରମଣୀ ଉଦ୍ଭବ ଧରଣୀର ପାରେଶ୍ୱର,
ଦୁର୍ଗେଶ୍ୱର ବଜ୍ରଧର ବେଣୁଧର ନରେନ୍ଦ୍ର ମହାପାତ୍ରଙ୍କର ॥
ରାଜେ ରାଜନ୍ଧ୍ୱ, ବିରାଜେ ମହା ମହିମାରେ ।
ଥାନା ଫାଣ୍ଡି ଡଙ୍କା ବଡ଼ାଇ ପତକା ଉଡଇ ନାହିଁ ସେ ସମୀରେ ॥
ହରି ଚନ୍ଦନ ଜଗଦେବ ନୀଳଷଠଙ୍କ ମୂଳକର ମାଲିକ ।
ସେ ହେଲେ ଗୃହକ, ଧନ ଘନୋଦକ, ବରଷୁ ଦୋଉଙ୍କ ଜନକ ।
ଥଣ୍ଡା ଭଜ ସେ ମଣ୍ଡାଇଲେ ମୁଖେ ଏ ଗିର ।
ଖଣ୍ଡାଇତ ବଂଶେ ଭଣ୍ଡାର କଲେ ସେ ଧଣ୍ଡାବନ୍ଦା ରଣପୁର ॥
ତାକୁ ତୁଚ୍ଛକରି ଦେବାର ଇଚ୍ଛାକୁ ଶ୍ରୀ ଦେଉ କରିଛ ଅନେକ ।
ଦୁଃଖୀ ରଙ୍କୀ ଖାଙ୍କୀ ଗୁଣୀ ଗୁଣବନ୍ତ ଜନେ ବରଷିଛ ଜନକ ॥
ଯେଉଁ କାଳରେ, ଉତ୍କଳ ଦେଶେ ଛନ୍ଦଭଙ୍ଗ ।
ସେ କାଳେ ଘୃତକ, ଫୁଲଇ ଛତକ, ଠେକାଇ ଅଛୁ ଉତ୍ତମାଙ୍ଗ ॥
ନିଖିରାଜ ରାଜେ ଭୂମି ଡନବାଟି-ସେ ମୋର ପଡଉଛୁ ବନ୍ଧାରେ ।
ଅଷ୍ଟପ୍ରାଣୀ ମୋର କଷ୍ଟ ପାଉଛନ୍ତି ପଡଚି ମୁଁ ମହା ଧନ୍ଦାରେ ।
ମଣିମା ସରଲ ସରଲ ସରଲ ।
ହାତୁଣୀ ବଲ୍ଲଭ ଦ୍ୱାରାନୁସରଣେ ନାତୁଣୀବଲ୍ଲଭେ ପେଷିଲି ।"
( ହାତୁଣୀ-ବଲ୍ଲଭ-ହାତି । ରଣପୁରରେ ଗୋଟିଏ ହାତୀଦ୍ୱାର ।

(୧୨) ଏକ ସମୟରେ ଖଣ୍ଡପଡ଼ା ରାଜା ପାହାଡ଼ ଉପରେ ହାତୀରେ ଯାଉଥିଲେ । ସେହି ସମୟରେ ନୟାଗଡ଼ ରାଜା ପାହାଡ଼ର ପାଦ ଦେଶରେ ସୁଆରରେ ଯାଉଥିବାର ଦେଖି ଖଣ୍ଡପଡ଼ା ରାଜା ଓ ଛଦନୁଚର ବର୍ଗ ହସିଲେ । ତହୁଁ ଯଦୁମଣି ନୟାଗଡ଼ ରାଜାଙ୍କ ପକ୍ଷାବଲମ୍ବନ କରି ନିମ୍ନୋକ୍ତ କବିତାଟି ବୋଇଲେ ।

"ନାକତ ତନ୍ତ୍ରଲ ଯାନବଢ଼କୁ, ଭାର ଯେଣୁ ସେଣୁ ଯାଏ ଛାଉକୁ ।" ଏଥିରେ ଖଣ୍ଡପଡ଼ା ରାଜା ଓ ତଦନୁଚରମାନେ ଲଜ୍ଜିତ ହେଲେ ।

(୧୩) ଖୋର୍ଦ୍ଧା ଇଲାକାରେ ବଡପାର ନାମକ ଏକ ମୌଜା ଅଛି । ସେଠାରେ ଏକ ସରବରାକାର, ତାଙ୍କର ପଦବୀ ଭ୍ରମରବର । ଏକ ଦିନ ଯଦୁମଣି ସେଠାକୁ ଯାଇଥିଲେ । ସେହିଦିନ ସେ ସରବରାକାରଙ୍କର ଗୋଟିଏ ଗାଈ ପ୍ରସବ ସକାଶେ କଷ୍ଟ ପାଉଥିଲା । ସେହି ସମୟରେ ଭ୍ରମରବର ଯଦୁମଣିଙ୍କୁ ପଚାରିଲେ, 'ଯଦୁମଣି ଏ ଗାଈକଣ ପ୍ରସବ କରିବ, ଅର୍ଥାତ ମାଈ କି ଅଣ୍ଡିରା ?' ତହୁଁ ଯଦୁମଣି କହିଲେ, "ଏ ଗୋଟିଏ ଅଣ୍ଡିରା ବାଛୁରୀ ପ୍ରସବ କରିବ 'ତେବେ ତୁମ୍ଭଙ୍କୁ ଦେବି, ମାଈ ବାଛୁରୀ ପ୍ରସବ କଲେ ଅମ୍ଭେ ରଖିବୁଁ' କିଛିକ୍ଷଣ ପରେ ସେ ଗୋଟିଏ ଅଣ୍ଡିରା ବାଛୁରୀ ପ୍ରସବକଲା । ତହୁଁ ସରବରାକାର କହିଲେ, "ଦୁଧ ଛାଡ଼ିଲେ ନେଇଯିବ" କିଛିଦିନ ପରେ ସେ ଅଣ୍ଡିରା ବାଛୁରୀ ଅନ୍ଦାଜ ୧ ୫୦୧ କାର ହେଲା । ଯଦୁମଣି ଦୁଇତିନି ଥର ସେ ବାଛୁରୀ ନେବାପାଇଁ ଆସିଲେ । କିନ୍ତୁ ସରବରାକାରଙ୍କର ଲୋଭ ହେବାରୁ ସେ ନଦେଇ ଟାଳଟୁଳ କଲେ । ତହୁଁ ଯଦୁମଣି ବିରକ୍ତ ହୋଇ ଭ୍ରମରବରଙ୍କୁ ନିମ୍ନୋକ୍ତ କବିତାଦ୍ୱାରା କହିଲେ—

"ଗଡ ବଡପାର ଓଡ ଭ୍ରମରା, ବଡ଼ଭିଡସୁଆ ମୋଡ଼ା ଭଅଁରା ।
ହସ୍ତ ଅଠାବାଡ଼ ମୁଖେ କାହାଳି, ନିର୍ଧୂମ ଧୂଆଁ ଦେଉଥାନ୍ତି ଟିକି ।
ଏ କାତଙ୍କ ଠଣା, ମଦଡପାଟନ ନଥାଇ ଠିକଣା ।"

(୧୪) ମନ୍ଦର ବେବର୍ତ୍ତା ନାମରେ ଜଣେ ଖଣ୍ଡପଡ଼ାର ପାତ୍ର ହୋଇଥିଲେ । ସେ ଧନମଦରେ ମତ୍ତହୋଇ ଯଦୁମଣିଙ୍କୁ ଅନାଦର କରିଥିଲେ । ତାଙ୍କ ପିତା ହାଡ଼ୁ ପାତ୍ର ବଡ଼ ଦରିଦ୍ର ଥିଲେ, ତେଣୁ ଯଦୁମଣି ମନ୍ଦର ବେବର୍ତ୍ତାଙ୍କର ଏପରି ଅଡ଼ମ୍ବର ଦେଖି ଏ କବିତାଟି ବୋଇଲେ—

"ହାଡ଼ୁ ପାତ୍ର ପୁଅ ସ୍ତ୍ରୀତ ଏସନ, ଗାଡ଼ୁ ପାତ୍ରେ ନ ମିଳଇ ବାସନା

ନାଡ ଅଛୁ କଣ୍ଠେ ଗଜ ମୁକୁତା, ତାଡ ଅଛୁ ମହାଶଙ୍ଖ ଦେବତା ।
ପାଡ ଛୁ ପାଟରେ, ମାଡ ଛୁ ଜଗ୍ଧ ଜୋଆକୁ ବାଟରେ ।”

(୧୫) ଖଣ୍ଡପଡ଼ାର ମହିମାମେରୁ ପ୍ରତିଷ୍ଠା ହୋଇ ସ୍ଥାପିତ ହେବା ସମୟରେ ଯଦୁମଣି ଖଣ୍ଡପଡ଼ା ଯାଇଥିଲେ । ରାଜା ମହିମାମେରୁଙ୍କ ଦର୍ଶନ କଲା ସମୟରେ ଯଦୁମଣି ସେଠାରେ ଉପସ୍ଥିତ ଥିଲେ, ସେହି ସମୟରେ ମହିମାମେରୁଙ୍କର ବଲ୍ଲଭମୁଆଁ ଭୋଗ ହୋଇଥିଲା ।

ରାଜା କହିଲେ, ଯଦୁମଣି । ଏ “ଦାଆଁଙ୍କ ନାମ ମହିମାମେରୁ ଦଆ ହୋଇଛୁ ।” ତହୁଁ ଯଦୁମଣି କହିଲେ, ସବୁଠାରେ ଗୁଡ଼ ଓ ଲଆ ମିଶି ମୁଆଁ ହେଉଅଛୁ । ରାଜା ଯଦୁମଣିଙ୍କୁ କହିଲେ, ଆଜ୍ଞା କାନ୍ତିପଣା ଓ ବଲ୍ଲଭ ମୁଆଁ ତୁମ୍ଭଙ୍କୁ ଦଆହେବ । ଗଡ଼ୀ ବେହେରା ଉକ୍ତ ପଦାର୍ଥମାନ ଯଦୁମଣିଙ୍କ ବସାରେ ଦେଇଆସିଲା । ମାତ୍ର ଅଦ୍-କଣ୍ଟ ଖର୍ଚ୍ଚ ଦେଲା ନାହିଁ । ଯଦୁମଣି ରାତିରେ ତାହା ଖାଇ ନ ପାରି ବିରକ୍ତ ହୋଇ ପରଦିନ କବିତାଟି ପଢିଲେ—

“କାନ୍ତି କାନ୍ତି ଦେଖିମନେ ହେଲା ଭ୍ରାନ୍ତି, କେମନ୍ତେ କରିବା ଅହାର
ଖଣ୍ଡପଡ଼ା ନାମ ମୁଖେ ଉଚ୍ଚାରନ୍ତେ ତତ୍ସଣେ ହୋଇଲା ମଧୁର ॥
ଚରଣ୍ଟ ବେହେରା ଖରଚ୍ଚ ନଦେଇ ଫେରନ୍ତ ହୋଇଣ ଗଲା ।
ଉପବାସୀ ଉପବାସେ ରହି ରହି ତେବେ କଣି ନ ପାରିଲା ।”

(୧୬) ଓଡ଼ିଶା ମହାରାଜାଙ୍କର ଏକଦିନେ ଯଦୁମଣିଙ୍କ ସହିତ ସାକ୍ଷାତ ହେଲା । ସେହିଦିନ ଧନୁସଂକ୍ରାନ୍ତି ହୋଇଥିଲା । ମହାରାଜା ଯଦୁମଣିଙ୍କୁ ପ୍ରଶ୍ନ କଲେ । ମହାପାତ୍ରେ କଣ ଇଚ୍ଛା ?” ତହୁଁ ଯଦୁମଣି ନିମ୍ନୋକ୍ତ କବିତା ଦ୍ୱାରା ମହାରାଜାଙ୍କୁ ଜଣାଇଲେ ।

। ଧନୁ ମାସ ହେଲା ହନୁ ନ ଚଳିଲା କହିବାକୁ ବଡ଼ ଲାଜ,
ମୁଆଁ କରଅଛୁ ମୁଆଁ ଖାଇବାକୁ ଦେବା ହେଉ ମହାରାଜ ।”

ତତ୍‌କ୍ଷଣାତ୍ ମହାରାଜ ପ୍ରୀତ ହୋଇ ଯଦୁମଣିଙ୍କ ବସାକୁ ମୁଆଁ ପଠାଇ ଦେଲେ ।

(୧୭) ଖଣ୍ଡପଡ଼ାର ରାଜା କୁଞ୍ଜବିହାରୀ ସିଂହ ମର୍ଦ୍ଦରାଜ ଭ୍ରମର

ବର ରାୟଙ୍କ କଠାଉ ଚୂଳକୁ ଲକ୍ଷ୍ୟ କର ନିମ୍ନୋକ୍ତ କବିତାଟି ବୋଲିଥିଲେ ।

ନୀଳମାଧବ ନୀଳଦ୍ରିଧାରୀ ଧରାପତିସୂକୁଳ କମଳାଙ୍କ ।

କୁଞ୍ଜବେହାରୀ କୁଞ୍ଜରାରି ଶ୍ରୀ ମର୍ଦ୍ଦରାଜ ଭ୍ରମରବର ରାଜାଙ୍କ ।

ପଦାବ୍ଜ, ଧାମରମ୍ୟ ରମା ହାରକ ।

ତାଠଙ୍କ ଶଙ୍କା ଅଙ୍କୁରାଏ ପାଦୁକା ଦନ୍ତଦନ୍ତ ଚୂଳ ଯୋଡକ ।

ନୀଳମାଧବ ଯେଉଁ ରାଜ୍ୟରେ ଅଛନ୍ତି ସେହି ରାଜ୍ୟ କ୍ଷତିପୂ ॥

ଚନ୍ଦ୍ର କୁଞ୍ଜବେହାରୀ ଫିହ ଭ୍ରମରବରରାୟଙ୍କ ହାତୀଦାନ୍ତ କଠାଉ ଚୂଳ ଲକ୍ଷ୍ମୀଙ୍କ ହାରକ ତାଠଙ୍କପର ଦିଶୁଛି ।

କାଳେ କେହି ହାତୀଦାନ୍ତକୁ ପ୍ରଶସ୍ତ ଭୂଷଣ ବୋଲି କହିବେ ନାହିଁ ସେଥିପାଇଁ ଯଦୁମଣି କହିଅଛନ୍ତି— ·

"ଭୂଷଣ ପ୍ରଶସ୍ତି ଦନ୍ତ ଦନ୍ତେ ନାସ୍ତି ଗ୍ରନ୍ଥବ ବା ଆଜ୍ଞା ଅବଜ୍ଞା ।
କନକ କୁଳଶ ନୀଳ ଗଜଦନ୍ତ ପ୍ରବାଳ ପଞ୍ଚରତ୍ନ ଫଞ୍ଚା ।"

---

(୧୮) ଥରେ ଯଦୁମଣି ନୟାଗଡ ରାଜାଙ୍କୁ ନିମ୍ନୋକ୍ତ କବିତାରେ ନିନ୍ଦା ଗର୍ବକୁ ସ୍ତୁତି କରିଥିଲେ ।

'ନବଦୁର୍ଗ ରାଣ ଇଷ୍ଟଦେବତା ପର ଆଚରଣ ।

ବାଉଁସ ଠାକୁରାଣୀ ନୟାଗଡ଼ ରାଜାଙ୍କ ଇଷ୍ଟଦେବତା ॥

(୧୯) ରାଜା ଯଦୁମଣିକୁ କିଛି ଜମି ଦେବା ସକାଶେ କହିଥିଲେ ମାତ୍ର ଖଣ୍ଡିଏ ଡିପଜମି ଦେବାରୁ ଯଦୁମଣି ନିମ୍ନୋକ୍ତ କବିତା ଲେଖି ରାଜାଙ୍କୁ ଦେଲେ ।

"ଦେଉ ଯାହା ଦେଲେ ହରଷେ । କରଣ ତା କଲେ ବରଷେ ।
ବାଛି ବାଛି କରି ଦେଲେ ପଡ଼ିଆ । ଶ୍ରାବଣ ମାସରେ ଭାଙ୍ଗେ ନଡ଼ିଆ ।
ଏମନ୍ତ ସେ ଭୂଇଁ । ଗୁଡୁଣ୍ଡା ବୁଣିଲେ ଉଠଇ ନାହିଁ ।"

(୨୦) ଯଦୁମଣି ରାଜାଙ୍କୁ ଶୀତ ସମୟରେ ଏ କବିତା ଦ୍ୱାରା ଦୁଇଗୋଟି ମନ୍ଦୁରା ମାଗିଥିଲେ ।

"ଘୋଡା ଘୋଡ଼ି ହୋଇ ଶୋଇବା ପାଇଁକି ଘୋଡ଼ାଘୋଡ଼ିଙ୍କର ଢର
ଯୋଡାଏ ଲୋଡା ମୋହର
ଡୋଡ଼ାରୁ ଥୋଡ଼ାଏ ଆଜ୍ଞା ହେଉ ମୋତେ ନବଦୁର୍ଗ ଧରେଶ୍ୱର"

(୧୧) ଯଦୁମଣି, ଚନ୍ଦନ ଯାତ୍ରା ସମୟରେ ପୁରୀକୁ ଆସି ନରେନ୍ଦ୍ର କୋଣରେ ବସା କରିଥିଲେ । ଏକଦିନ ଯଦୁମଣି ବସା-ଘର ଦାଣ୍ଡଦୁଆରେ ନିଜେ ବସି ଅଛନ୍ତି । ବେଶ୍ୟାମାନଙ୍କ ମଧ୍ୟରୁ ଏକଜଣ ତନୁ ନାମକ ବେଶ୍ୟା ବାଟରେ ଗୋବର ମାଡିଲା । ଯଦୁମଣି ବସିଥିବା ଦୁଆରେ କେତେକ ବାଉଁଶ ଜମାଥିଲା । ସେ ବାଉଁଶରେ ତନୁ ଗୋଡ଼ ପୋଛିଦେଲା ତହୁଁ ଯଦୁମଣି ନିମ୍ନୋକ୍ତ କବିତାଟି କହିଲେ ।

"ମାଉଁସ ଦ' ପଲ ତନୁ
ବାଉଁଶ ଅଗରେ ଗୋଡ଼ ପୋଛିଦେଲା ଝିଲପ ଚେକିଣ ଜାନୁ ।

(୨୨) ଚକ୍ରପାଣି ପଟ୍ଟନାୟକ ନାମକ ଜଣେ କବି ନୟାଗଡ଼ ରାଜାଙ୍କ ନିକଟକୁ ଆସିଥିଲେ । ଯଦୁମଣି ସହିତ ତାହାଙ୍କ ପ୍ରଥମ ସାକ୍ଷାତ ହେବା କାଳରେ ଚକ୍ରପାଣି ଯଦୁମଣିଙ୍କୁ ପଚାରିଲେ ଏଠାରେ କେହି କବି ଅଛନ୍ତି ଯଦୁମଣି କହିଲେ "ପ୍ରଧାନ ପ୍ରଧାନ କବି ବର୍ତ୍ତମାନ ବହୁ ଦୂରରେ ଅଛନ୍ତି ମାତ୍ର ମୁଁ ଗୋଟିଏ ସାମାନ୍ୟ କବି ଯଦି ଆପଣଙ୍କର କିଛି ପଚାରିବାର ଥାଏ ତାହାହେଲେ ପ୍ରଶ୍ନ କରନ୍ତୁ ।" ତହୁଁ ଚକ୍ରପାଣି କେତେ ଗୁଡିଏ ପ୍ରଶ୍ନ କଲେ ।

ପ୍ରଥମ ପ୍ରଶ୍ନ ।

(୨୩) ପ୍ରମଥ କେଶରୀ ଗଜକପୋଳକୁ ନ ଚରଇ କଦାଚିତେ ?
ଯଦୁମଣିର ପୂରଣ "ମହିଷାବରଥ [୧] ଗଣନାଥ ମାଥ କଇଲାସ ପରବତେ [୨] ନିହି କଦାଚିତେ—କେଉଁଠାରେ ଥାଇ ।"

ଦ୍ୱିତୀୟ ପ୍ରଶ୍ନ ।

(୨୪) କାମା ପ୍ରଶଂସିବା ପ୍ରଶଂସା ପଦବୀଅଛି ବୋଲି ବଳା ରୀତରେ ଯଦୁମଣିର ପୂରଣ—ମୂକ କହିଅଛି ଯେ ବାଳାମଣିର ଶ୍ରୀ ତରଣି ବଳାରୀତରେ ।

## ଏହାର ଭାବାର୍ଥ

ଚକ୍ରପାଣି ପଚାରିଲେ ଇନ୍ଦ୍ରଙ୍କ ପ୍ରଶଂସା କି ହେତୁ କରିବା । ତହୁଁ ଯଦୁମଣି କହିଲେ, "ଯେଉଁ ପୁରୁଷ ବାଳାମଣିର [ସ୍ତ୍ରୀର] ପାଦ ବଳାକୁ ରତିରେ ମୁକ୍ତ କରିଅଛି, ଅର୍ଥାତ୍ ବିପରୀତ ରତିସୁଖ ଭୋଗ କରିଅଛି, ସେ କାହିଁକି ପ୍ରଶଂସା କରିବ ।

## ୩ୟ ପ୍ରଶ୍ନ ।

(୨୫) "କେଉଁ ସମୟରେ, ବଧୂ ଶ୍ୱଶୁର ସଙ୍ଗ ଇଚ୍ଛା କରେ ।" ଯଦୁମଣିର ପୂରଣ—"ଦ୍ରୌପଦୀ ନନ୍ଦିନୀ ଗୁରୁ ସୁକେଶୀ । ଭୀମ ବୀର ସଙ୍ଗେ ସୁରତେ ରସି । ଗବାକ୍ଷ ପାଶରେ ବସି ବିରସେ । ଲୋଡେ ଯେତେବେଳେ ପବନକୁ ସେ । ସେହି ସମୟରେ, ବଧୂ ଶ୍ୱଶୁର ସଙ୍ଗ ଇଚ୍ଛା କରେ ।"

## ୪ର୍ଥ ପ୍ରଶ୍ନ ।

(୨୬) କାଣୀ ଗଣିକା, ଏହି ପଦକୁ ବାମରୁ ଦକ୍ଷିଣକୁ ଏବଂ ଦକ୍ଷିଣରୁ ବାମକୁ ପଢ଼ିଲେ ଯେପରି ଏକ ପଦ ବୋଲି ବୋଧ ହେଉଅଛି । ଏହାର ଦକ୍ଷିଣ ଓ ବାମ ପାର୍ଶ୍ୱରେ ସମାନ ସଂଖ୍ୟକ ବର୍ଣ୍ଣ ବିନ୍ୟାସ କରି ସେହିପରି ଗୋଟିଏ ବାକ୍ୟ ରଚନା କର ? ତହୁଁ ଯଦୁମଣି କହିଲେ—

"କଡାକୁ କାଣୀ ଗଣିକାକୁ ଡ଼ାକ"

(୨୭) ଯଦୁମଣି ଚକ୍ରପାଣି ପଟ୍ଟନାୟକଙ୍କୁ ଗୋଟିଏ ପ୍ରଶ୍ନ କରିଥିଲେ ତାହା ନିମ୍ନରେ ଦିଆଗଲା । ମାତ୍ର ଚକ୍ରପାଣି ଉତ୍ତର ଦେଇପାରି ନାହାନ୍ତି ।

"ଛବିରେ କେ ଜଣେ ନବରବିଙ୍କି, ତେଙ୍କେ ପେଟ୍ଟ ପୋଷେ ଧନୁଶର ବିଙ୍କ, ଜଳଠାରେ ଭୀତ ତାହାର ନିତ୍ତ୍ୱ, କାର ଭୟ ନାହିଁ ଉରଗ ପ୍ରତି ବିଗୁରି କହିବ, ଗୁରପଦାର୍ଥ ଏକ ହୋଇଥିବ ।" [ଅବିର]

୧ମ ପାଦର ଅର୍ଥ—ଅବିର ଅର୍ଥାତ୍ ଫଗୁ ।

୨ୟ ପାଦର ଅର୍ଥ—ଅଦ୍ୱାର ଯେ ଦ୍ୱାର ନୁହେ ।

୩ୟ ପାଦର ଅର୍ଥ [ଛେଳି] ର ଛେଳିର ।

୪ର୍ଥ ପାଦର ଅର୍ଥ—ଅ [ ବସ୍ତ୍ର ] ବ [ପକ୍ଷି] ର ।

[୧୮] ଯଦୁମଣି ଅମୂଲ ଦୁଇଖଣ୍ଡ ନିମ୍ନୋକ୍ତ କବିତା ଦ୍ୱାରା ମାଗିଥିଲେ—

"ଅଚ୍ୟୁତ ଖଣ୍ଡା ଚ୍ୟୁତ ହୋଇଥିବ । ଆନନ୍ଦ ମୂଳକ ଦ୍ୱିଖଣ୍ଡ ଦେବ ।"

[୧୯] ଯଦୁମଣି ରାଜାଙ୍କୁ ନିମ୍ନୋକ୍ତ କବିତା ଦ୍ୱାରା ଘୋଡ଼ାଟିଏ ମାଗିଥିଲେ, ନୋହିବ ହରଣ ନୋହିବ ଗାଈ, ଘୋଡ଼ା ନାମ ବହି ହୋଇବ ମାଈ ॥ ପିଇବ ତୋରାଣି ଖାଇବ କୁଣ୍ଡା, ତେବେ ଯଦୁମଣି ହୋଇବ ଭେଣ୍ଡା ॥

ହରଣ ପରି ଚଞ୍ଚଳ ବା ଗାଈ ପରି ମଠୁଆ ନ ହେବ ।

[୨୦] ନୟାଗଡ ରାଜାଙ୍କର ରାଣୀହଂସପୁର ଅଗଣାରେ ଦୁଇ ଗୋଟି ବର ଅଶ୍ୱତ୍ଥ ଗଛ ଅଛି । ଏକଦାନରେ ସେ ଗଛ ଉପରେ ଦୁଇ ଗୋଟି ବାନର ରତ କରୁଅଛନ୍ତି । ଏହି ସମୟରେ ରାଜାଙ୍କ ଭିଆସ ଅଗଣାରେ ଯଦୁମଣି ସହିତରେ ରାଜା ଅନ୍ୟାନ୍ୟ ବିଷୟ କଥୋପକଥନ ହେଉଛନ୍ତି । ଏମନ୍ତ ସମୟରେ ରାଣୀ ବଟବୃକ୍ଷ ଉପରେ ଥିବା ବାନର ବାନରୀଙ୍କର ରତ ଦେଖି, ମହି ପାଚିରୀରେ ଥିବା ଗବାକ୍ଷମାର୍ଗରେ ରାଜାଙ୍କ ଶ୍ରୀଅଙ୍ଗକୁ ଗୋଟିଏ ଫୁଲମଣ୍ଡା ନିକ୍ଷେପ କଲେ । ତହୁଁ ରାଜା ଯଦୁମଣିଙ୍କୁ ପ୍ରଶ୍ନ କଲେ—

ପ୍ରଶ୍ନ—ମନେ କି ପାଞ୍ଚିଲା ? ହସି ଫୁଲମଣ୍ଡା ପକାଇ ଦେଲା । ଯଦୁମଣିର ଉତ୍ତର-'ବଟବୃକ୍ଷ ପରେ ବାନରୀ ରତ । ଦେଖି ବାଳବାର ବଳିଲା ଚିତ୍ତ । ମନେ ସେ ଇଚ୍ଛିଲା । ହସି ଫୁଲମଣ୍ଡା ପକାଇ ଦେଲା ।

[୨୧] ଦିନେ ରାଜା ଦେବାର୍ଚ୍ଚନ ସମୟରେ ଧାତୁ ବିଗ୍ରହ ପ୍ରତିମାକୁ ପୂଜା କରୁଥିବାର ଦେଖି ଯଦୁମଣି କହିଲେ—

"କେଉଁଠାରେ ଖଡ଼ ଗଢ଼ କେଉଁଠାରେ ମୁଦ ।

କେଉଁଠାରେ ବୋଲଉଛ କରୁଣାବାରଧି ।"

ପିତ୍ତଳରେ ଖଡ଼୍ଗ ଗଢ଼ୁ ମୁଦହୁଏ, ମଧ୍ୟ ଦେଖି ପ୍ରତିମାଦ ହୁଏ ।

[୩୨] ଯଦୁମଣି ଏକ ଗଡ଼ଜଉଁଣୀକୁ ପଚାରିଲେ ଆଟିକାଏ ଦୁଧର ମୂଲ୍ୟ କେତେ ? ସେ ଗଡ଼ଜଉଁଣି ପଣ୍ଡିତା ଥିଲା ଯଦୁମଣିର ରହସ୍ୟୋକ୍ତି ବୁଝି ପାରି କହିଲା ବଡ଼ାକର ମୂଲ୍ୟ କେତେ ।

[୩୩] ପୁରୀର ଜଗନ୍ନାଥ ରାୟଗୁରୁ ସାକ୍ଷାତ ହେବାରୁ ଯଦୁମଣି ନିଜେ କବି ବୋଲି ପରିଚୟ ଦେଲେ । ଜଗନ୍ନାଥ ରାୟଗୁରୁ ଗୋଟିଏ ସୁନ୍ଦରୀ ସ୍ତ୍ରୀକୁଁ ଦେଖାଇ କହିଲେ—"୯ ଧନ ଦରପଣ ମୁହଁ ।"
ଯଦୁମଣି କହିଲେ—

"ଅଙ୍କେ ବସାଇଲେ ନ ଗଣନ୍ତି ଆଉ ଧନ ଦରପଣ ମୁହଁ ।"

[୩୪] ରାଜା ଗୋଟିଏ ବସନ୍ତ ମୁହଁ ସ୍ତ୍ରୀକୁ ଦେଖାଇ କହିଲେ—"ବସନ୍ତ ମୁହଁକୁ ଉପମା ଖଟୁ ।"
ଯଦୁମଣି କହିଲେ—

"କାମ କାକରା ଛଙ୍କା ଜାଲିଚଟୁ ।"

[୩୫] ଏକଦିନେ ଯଦୁମଣି ଅଠଗଡ଼କୁ ଯାଇଥିଲେ । ବଣି ପ୍ରହରାଜଙ୍କର ଦେହୁଡ଼ିରେ ରାତକୁ ଶୋଇଅଛନ୍ତି, ଏମନ୍ତ ସମୟରେ ପ୍ରହରାଜେ ରାଜାଙ୍କ ଉଆସରୁ ଅନ୍ଧାରରେ ଆସିଲେ । କିଛିକ୍ଷଣ ପରେ ଆଖଡ଼ା ପିଲା ଆସିଲା, ତା ଆଗରେ ଭଣ୍ଡାରି ମଶାଲ ନେଇ ଆସୁଅଛି, ଏ କଥା ଯଦୁମଣି ଦେଖି ନିମ୍ନୋକ୍ତ କବିତାଟି କହିଲେ—

"ଧନ୍ୟ ଅଠଗଡ଼ ଲୀଳାରେ । ବଣି ପ୍ରହରାଜେ ଅନ୍ଧାରେ ଆସନ୍ତି ଗୁରୁଙ୍କ ହାତେ ହୁଲାରେ ।"

[୩୬] ଏକଦିନେ ନୟାଗଡ଼ ରାଜା ତାମଯାନରେ ଆରୋହଣ କରି ନଗର ମଧ୍ୟରେ ଭ୍ରମଣ କରୁଥିବା ସମୟରେ ଏକ ସୁନ୍ଦରୀ ଦରଜି କନ୍ୟାକୁ ଦେଖି ଯଦୁମଣିଙ୍କୁ କହିଲେ ବର୍ତ୍ତମାନ ଏ ସୁନ୍ଦରୀକୁ ଲକ୍ଷ୍ୟକରି ଗୋଟିଏ କବିତା ବୋଲ ? ତହୁଁ ଯଦୁମଣି ଏହି କବିତାଟି ବୋଇଲେ ।

"ଦରଜି କୁଳରେ ସରଜି ଅଛୁ ଯେ ବଧୂ ସମତୁଲ ହାସ । ମରଜି ବୁଝି ମୁଁ ଅରଜି ଦେବାକୁ ପାଉନାହିଁ ଅବକାଶ । ମଉଳି ପଛକେ

ଝିବ, ମଉଳ ନଥିବା ଜବା ଅଧରାକୁ ଅଭ୍ରେଗେ କେ ବରଜବ ।

[୩୭] ଦିନେ ରାଜା ଯଦୁମଣିଙ୍କୁ ବ୍ୟଙ୍ଗୋକ୍ତି କରି କହିଲେ, 'ଯଦୁମଣି-ରୁଲ୍ ତୋଠାକୁ ଝିବା । ଯଦୁମଣି କହିଲେ, 'ମୁଁ ଟିକେ ତୋରାଣୀ ସାର ଅଛେ । ରାଜା ହସି ପୁରସ୍କାର ଦେଲେ ।

[୩୮] ଦିନେ ରାଜା ଯଦୁମଣିଙ୍କୁ କୁଳେ ପ୍ରଶ୍ନ ପଗ୍ଚରନ୍ତେ ଯଦୁମଣି କହିଲେ—

"ଯେଉଁ ଦିନ ଆମ୍ଭେ ଏଠାକୁ ଅଇଲୁଁ ସେହୁ ଦିନୁ ହେଲାଖଡ଼ା,
ଲେମ୍ବୁ ନାରଙ୍ଗରେ ହାତ ନ ପଡ଼ିଲା ଭାତ ଖିଆ ହେଲା ଛଡ଼ା ।
ଆଳୁ କଦଳିରୁ କି ସୁଖ ମିଳିବ ସେତ ଜ୍ୱେଡ଼ୁ ଥାଏ ସାଥି,
କହେ ଯଦୁମଣି କରମଙ୍ଗା ହେଲେ କିଛୁ ବା କୁଚନ୍ତା ପଥି ।

[୩୯] ରାଜା ଗୋଟିଏ ସ୍ତ୍ରୀର ମସ୍ତକରେ କଳ୍ପୁଳ ବାନ୍ଧୁ ଦେଖି ଯଦୁମଣିଙ୍କୁ ପଗ୍ଚରିଲେ—

"କି ଜାଣିଣ ବନ୍ଧୁ । ଚମ୍ପା ଫୁଲେ ଦେଲା କଳ୍ପୁଳ ବନ୍ଧୁ ।"

ଯଦୁମଣିଙ୍କ ଉତ୍ତର—

ରାଜାପୁତ୍ରମୁଖୀ ବଗ୍ଚରେ ମନ । ଭ୍ରମର ଏ ଫୁଲ ନ କରେ ପାନ,
ଚଟୁଳ ସ୍ତ୍ରନା ଏମନ୍ତ ବଗ୍ଚରେ । ଦେଖିବାତ ଦେଖି କି ଶୋଭାଧରେ ।
ସେହି ହେତୁ ବନ୍ଧୁ, ଚମ୍ପାଫୁଲେ ଦେଲା କଳ୍ପୁଳ ବନ୍ଧୁ ।

[୪୦] ଏକଦିନେ ଯଦୁମଣି କୌଣସି କାରଣବଶତଃ ଆପଣା ପିତାଙ୍କୁ ଅପମାନସୂଚକ ବାକ୍ୟ କହିଥିଲେ । ତାଙ୍କପିତା ମନଦୁଃଖରେ ନୟାଗଡ଼ ରାଜାଙ୍କ ନିକଟକୁ ଯାଇ ଯଦୁମଣିଙ୍କ ନାମରେ ଗୁହାରି କରିବାରୁ ରାଜା ତାଙ୍କୁ ବସାଇ ଯଦୁମଣିଙ୍କୁ ପାଇକ ଦ୍ୱାରା ଡ଼କାଇଲେ. ଯଦୁମଣି ରାଜାଙ୍କ ଡ଼କରାରେ ନ ଆସି ସେହି ପାଇକ ଦ୍ୱାରା ନିମ୍ନୋକ୍ତ କବିତାଟି ଲେଖି ପଠାଇଲେ ।

"ଅଣକ ଗୋଲୁଛୁ ପେଟ କଣକ ପାଇଁ ।
ସଭାରେ ବସିଛୁ ସେ ଜଣକ ପାଇଁ ।"

[୪୧] ଜଣେ ତେଲି ରାଜାଙ୍କଠାରୁ କେତେକ ଟଙ୍କା ମାଗିଆଣି କେତେକ ବେଠିଅଙ୍କ ସାହାଯ୍ୟରେ ଖଣ୍ଡିଏ ମଣ୍ଡପ ତୋଳାଇଁ ଆପଣା ନାମରେ ପ୍ରତିଷ୍ଠା କରିବାରୁ ଯଦୁମଣି ଏହି କବିତାଟି ବୋଲିଥିଲେ ।

ସରିଲା ରାଜାଙ୍କ ଗଣ୍ଡି । ପରଜାଏ କଲେ ବେଠି ।
ଏମନ୍ତ ମଣ୍ଡପ ପ୍ରତିଷ୍ଠା ଗୁଡ଼ଲ ତେଲି ମୁଣ୍ଡେ ହେଲା ବୁଦ୍ଧି ।



[୪୨] ଯଦୁମଣି ନିକଟକୁ କବିସୂର୍ଯ୍ୟ ଗୋଟିଏ କବିତା ରହସ୍ୟରେ ଲେଖି ପଠାଇଲେ, ତାହା ଏହି ।

"ନାହିଁ ବାରୁଦ ଅଉ ଗୋଳାସଜ, ବଡ ଉଛୁଟ ସେ ତୋପଆବାଜ ।
ଜାମୁକା ଅନଳ ଦେଖିଲି ନାହିଁ, ଚମକ୍ପଡିଲା ଘୁମୁକା ମୁହିଁ ।
ସେହି ପାତାଳକୁ, ଅଗକର ଦହି ଦେଲା ସ୍ୱର୍ଗକୁ ।"

ସ୍ୱର୍ଗ-ନାକ, ନାସିକା ।

ଉପରୋକ୍ତ କବିତାର ଅର୍ଥ ଗୁହ୍ୟବାୟୁ ।

ଯଦୁମଣି ତାହା ବୁଝିପାରି ନିମ୍ନୋକ୍ତ କବିତା ତାଙ୍କ ନିକଟକୁ ଲେଖି ପଠାଇଲେ—

"ପାର୍ଥ ଧନୁ ନାମ ଗଲା ବେଳେ, ଭୀମତାତ ଜାତ ହେଲେ ସେ କାଳେ । ବଡ ବାଙ୍କପଣ, ଆମ୍ଭ ପାଖକୁ ଲେଖିଛ ଆପଣ ।"

ଭୀମ ତାତ—ପବନ ।

[୪୩] ଏକଦିନେ ଯଦୁମଣିଙ୍କୁ ତାଙ୍କର ସଙ୍ଗାତ ଖାଇବାକୁ ନିମନ୍ତ୍ରଣ କରିଥିଲେ । ସେ ଯେଉଁ ହରଡ ଡାଲି କରିଥିଲେ ତାହା ସିଝି ନ ଥିଲା । ଏବଂ କେରାଣ୍ଡି ମାଛ ତିଅଣରେ ବେଶି ପାଣି ଥିଲା ତାହା ଦେଖି ଯଦୁମଣି ନିମ୍ନୋକ୍ତ କବିତାଟି କହିଲେ—

"ଦନ୍ତେ ବାଜନ୍ତେ ଲୁଡୁ ମୁଡୁ ବାଜିଲା ।
ଘୁଡୁ ଘୁଡୁ ବେଲରୁ ଓହ୍ଲାଇଥିଲା ॥
ଦରାଣ୍ଡି ଆଣିଥିଲା କେରାଣ୍ଡି ମାଛ ।
ଢେ ଢାଣ୍ଡି ରାନ୍ଧିଅଛୁ ଦଶରି ସ୍ୱଚ୍ଛ ॥

[୪୪] ଯଦୁମଣିଙ୍କର କୌଣସି ଜ୍ଞାମିତ୍ୟ ହୋଇ ଥିବାରୁ ତାହାଙ୍କର ସମସ୍ତ ବନ୍ଧୁ ଅସିଥିଲେ, ଯଦୁମଣି ଅଗଣାରେ ଭାଉକର ତଳ୍ପିରେ ଶିମ୍ବ ମଡାଇଥିଲେ । ତାହା ତଳରେ ସମସ୍ତେ ବସି ଭୋଜନ କରୁଥିଲେ । ମାତ୍ର ତ୍ରୁଂଣ ପାଣିଅ ହୋଇଥିବାରୁ ମନେ ମନେ ବିରକ୍ତ ହୋଇ ଯଦୁମଣିଙ୍କୁ ଭୟ କରି କିଛି କହିଲେ ନାହିଁ । କିନ୍ତୁ ତାଙ୍କ ଶାଳକ ଯଦୁମଣିଙ୍କୁ ଉକ୍ତ ବିଷୟ କହିବାକୁ ଉନ୍ମୁଖୀ ହେବାରୁ ଯଦୁମଣି କହିଲେ—

ଅରେ ଚହଟା, ଝଟା ଲଟାଡଲେ ନ କର ହଠ ।
ମୋର ମାଇପ ତୋର ଭଉଣୀ, ତଉଣରେ ଦେଲା ଆଣି ଏ ପାଣି ।"

(୪୫) ଗୋଟିଏ ସ୍ତ୍ରୀ ଏରୁଣ୍ଡୀ ବନ୍ଧ ଉପରେ ଗୋଡ଼ଥୋଇ ନାଗବନ୍ଧକୁ ଧରି ମେଘକୁ ଗୃହୁଁଥିଲା, ଯଦୁମଣି ତାକୁ ଦେଖି ଏହା କହିଥିଲେ—

"ଦନେ ଯେ ବାଳାକୁ ସେ ପ୍ରେମଶୀଳାକୁ ଦାଳାକଳ୍ପଲ-କୁନ୍ତଳାକୁ । ଲମ୍ବାଇ ତଳକୁ ସେ ମୋତି ମାଳାକୁ ଗୃହିଁ ଯେ ଥିଲା ଚଞ୍ଚଳାକୁ ।
ଦେଖିଲି, କର ପଦ୍ମ ଦେଇ ଶୀଳାକୁ ।
ନାସାପରେ ଥୋଇ ନଗ୍ନଉଥିଲା ତା ଚରଣ ବାଜେଣୀ ବଳାକୁ ।"

ଶୀଳା—ନାଗବନ୍ଧ । ନାସା—ଏରୁଣ୍ଡି ବନ୍ଧ ।

(୪୬) ପୁରୀରେ ଫକୀରମାହାରୀ ବୋଲି ଜଣେ ପଣ୍ଡିତା ବେଶ୍ୟାଥିଲା । ଯଦୁମଣି ତାକୁ ପରୀକ୍ଷା କରିବା ଉଦ୍ଦେଶ୍ୟରେ ଏହି କବିତାଟି ଲେଖି ପଠାଇଲେ—

"ଗଦାଧର ନଗରୀ ନଦାଧିପଲହରୀ ଗବଂଚବଂକ ହାସେ ସ୍ତନଶମ୍ଭୁଙ୍କୁ କରାଇଛୁ ସ୍ନାନ । ମୋ ଅନଙ୍ଗ କାମରେ ବିଗୃହ ମରମରେ ମୋ ମାଳୀ ନୋହିବୁ କି ଧେନରେ । ରସବଲ୍ଲୀ ଛଇଳା ରତନର ଝୁମ୍ପୁଁ । ବିଗୃହ ଗଲି ଏ ଇଚ୍ଛା ମୁଁ । ହାଜର ହେଲେ ତୋର ସଗର ବାଜୀ ଗ୍ରୈର ପାଜ କରିବ ମୋତେ ଝୁମ୍ପୁରେ ।"

ଭାବାର୍ଥ—ଗଦାଧର ନଗର-ପୁରୁଷୋତ୍ତମ । ନଦାଧିପ ସମୁଦ୍ର ରେ ରସବଲ୍ଲି । ତୁ ହାସଦ୍ୱାରା ପୁରୁଷୋତ୍ତମ ନିକଟସ୍ଥ ସମୁଦ୍ର ଲହରୀର ଗର୍ବକୁ ଖର୍ବ କରିଅଛୁ । ସ୍ତନ ଶମ୍ଭୁକୁ ପୁଣି ସ୍ନାନ କରାଇଛୁ । ମୋତେ ଆନନ୍ଦ ଦେବା ବିଷୟରେ ତୁ ଅବଶ୍ୟ ଯୋଗ୍ୟାହେବୁ । ଏହାବିରୁଦ୍ଧ ମୁଁ ତୋ ( ସ୍ତମ୍ଭ ) ନିକଟକୁ ଗଲି, ତୋ ପାଖରେ ହାଜର ହେଲେ ସଗରବାଜୀ ରୈର ( ଇନ୍ଦ୍ର ) ସେ ପାଜି ମତେ ସ୍ତମ୍ଭ ( ନମସ୍କାର ) କରିବ । ତହୁଁ ସେ ବେଶ୍ୟା କହିଲା ଯେ ରୈର ସେ ନମସ୍କାର କରଇ ନାହିଁ ଅଧିକ କି ହେଲା ? ଯଦୁମଣି କହିଲେ, ତୁ ବୁଝି ପାରିବୁ କି ନାହିଁ ଏଥିପାଇଁ ସିନା ସେହିପରି ଲେଖିଥିଲି ଏବେ ଶୁଣି "ହାଜର ହେଲେ ନେଇ ରାଜା ରାଜତ ଗାଦ ପାଳି କରିବ ମତେ ସ୍ତମ୍ଭ ।"

(୪୭) ଅନେକ ସ୍ତ୍ରୀ ପୁରୁଷ କାର୍ତ୍ତିକମାସ ପଞ୍ଚୁକ ସ୍ନାନ କରି ଜଗନ୍ନାଥ ଦେବଙ୍କ ଦର୍ଶନକୁ ସଡ଼କରେ ଯାଉଥିବାର ଦେଖି ରାଜା ଯଦୁମଣିଙ୍କୁ ଲକ୍ଷ୍ୟକରି କହିଲେ, ଏକାକରେ କେଉଁମାନେ ଯାଉଛନ୍ତି । ତହୁଁ ଯଦୁମଣି କହିଲେ, ଏକାକରେ ଦ୍ୱିକରେ ସ୍ତ୍ରୀକର ଧରି ଚତୁସ୍କର ଦର୍ଶନକୁ ପଞ୍ଚକରେ ସଡ଼କରେ ଯାଉ ଅଛନ୍ତି । ଚତୁସ୍କର-ବିଷ୍ଣୁ-ଜଗନ୍ନାଥ, ରାଜା ପ୍ରକୃତ ଉତ୍ତର ପାଇ ଆନନ୍ଦିତ ହୋଇ ଯଦୁମଣିଙ୍କୁ ଅନେକ ପ୍ରଶଂସା କଲେ ।

(୪୮) ଯଦୁମଣିଙ୍କ ପୁଅ ଚଟଶାଳୀରେ ପଢ଼ିବା ସମୟରେ ଶ୍ରୀପଞ୍ଚମୀ ଦିନ ଚଇନଡିଅ ଘେନି ରାଜାଙ୍କ ନିକଟକୁ ଆସିଥିଲା । ରାଜା ହାତ ପାଇ ପରୀକ୍ଷାଙ୍କ ନିକଟକୁ ପାଞ୍ଚଟଙ୍କା ଦେବାକୁ ଚିଠିଲେଖିଲେ । ତାହା ସେ ନ ଦେବାରୁ ଯଦୁମଣି ରାଜାଙ୍କ ନିକଟରେ ନିମ୍ନଲିଖିତ କବିତାଟି ବୋଲିଲେ ।

"ଚଇ ନାରିକେଳପାଷା, ଚଟ ପିଲାଙ୍କର ଭିକ୍ଷା,
ପାଇଙ୍କ ପଇରେ ମୁଇକର ସ୍ତୁତି ଗେଲାକ ହାଡ଼ ପରୀକ୍ଷା ।"

ରାଜା ତତ୍‌କ୍ଷଣାତ ପାଇକୁ ଡ଼କାଇ ଆଣି ଯଦୁମଣିଙ୍କୁ ୫ ଟଙ୍କା ଦେଇ ଦେଲେ ।

(୪୯) ଯଦୁମଣି ପ୍ରତି ଅମାବାସ୍ୟାରେ ରାଜବାଟୀରେ ଥିବା ଏକ ଦେବ ପ୍ରତିମୂର୍ତ୍ତି ଚନ୍ଦନର ଏକସେର ଉଆଗୁଡ଼ିଲ ପାଆନ୍ତି, ମାତ୍ର ଥରେ ନ ପାଇବାରୁ ନିମ୍ନଲିଖିତ କବିତାଟି ରାଜାଙ୍କ ଆଗରେ ପଢ଼ିଲେ—:

"ଉଆଁସରେ ଉଆସରେ ନାହିଁ ଉଆସେରେ ।"

(୫୦) ଦଶହରା ଦିନ ଦେବୀଙ୍କ ନିକଟରେ ଯେଉଁମାନେ ପଶୁମାନଙ୍କୁ ହାଣନ୍ତି ତାହାଙ୍କୁ ଲକ୍ଷକରି ଯଦୁମଣି କହିଥିଲେ—

କର୍କଶ କର·କରେ କଟାରି ଧରି ।
କ୍ରୋଧେ ହାଣଇ ଗଳା କନ୍ଦରୁ କରି ।
ଖାଇଣ ମହାମାୟୀ ସନ୍ତୋଷ ହୋଇ ।
ଜନ୍ମ ଜନ୍ମକେ ହଣା ହୋଇବୁ ତୁହି ।"

(୫୧) ଇଟା ମାଟି ଗ୍ରାମରେ ଜଣେ ବହୁତ ସମ୍ପତ୍ତିବାନ ତେଲି ଥିଲା ସେ ଏପରି କୃପଣ ଯେ, ଭଲଦ୍ରବ୍ୟ କିଛି ନ ଖାଇ ମାଣ୍ଡିଆ ପ୍ରଭୃତି ନିକୃଷ୍ଟ ପଦାର୍ଥ ଖାଇ ଧନ ସଞ୍ଚୟ କରୁଥାଏ । ଯଦୁମଣିଙ୍କୁ ସେ କିଛି ଦେଇ·ନ ଥିବାରୁ ସେ ତଳଲିଖିତ କବିତାଟି କହିଲେ—

"ଘଣାରେ ଶାବଳ ଦିଅ । ଜାତି ଗୁଡ଼ି ବଳଦିଅ ।
ଭାରିଯାକୁ ବୋଲେ ଘରୁ ତୁ ଭାରି ଯା ଦେଖି ମଳ ହଳଦିଆ ।"

(୫୨) ଯଦୁମଣି ରାଜାଙ୍କ ଦୁଇଗୋଟି ବଳଦ ମାଗିଥିଲେ । ମାତ୍ର ରାଜା ଦେବାକୁ କହି ଶିଘ୍ର ନ ଦେବାରୁ ଯଦୁମଣି ନିମ୍ନୋକ୍ତ କବିତାଟି କହିଲେ—

"ଦେବା ଦେବା ବୋଲି ବୋଇଲେ ବରଷିଲେ ଜଳଦ ।
ବୁଲି ମାଣ କେତେ ଚଷନ୍ତି ଦେଇଥିଲେ ବଳଦ ।
ଦେବେ ଦେବେ ବୋଲି ଯାହା ମୁଁ ଜଗତରେ କହିଲି ।
ଦେବଦେବଙ୍କର ବାହାନ ପଛଅଡ଼ ପାଇଲି ।"

ଦେବ ଦେବ-ମହାଦେବ

(୫୩) ଏକଦାଦନେ ଯଦୁମଣି ଶ୍ୱଶୁର ଘରକୁ ଯାଇଥିଲେ । ଶ୍ୱଶୁର ଯଦୁମଣିଙ୍କର ଚତୁରତାଜାଣି ଆପଣାର ସ୍ତ୍ରୀଙ୍କୁ କହିଲେ 'ଅମ୍ଭ ସାନ-ଝିଅ ଝଟକମଣି ସହିତରେ ଯଦୁମଣିର ଯେପରି ସାକ୍ଷାତ ନ ହୁଏ ତହିଁ ପ୍ରତି ନଜର ରଖିବ ।' ଏକଥା ଯଦୁମଣି ଶୁଣି ଶ୍ୱଶୁରଙ୍କର ଯେ ଧାଈ ଥିଲା ତାକୁ କିଛି ମୁଦ୍ରା ଦେଇ ଏହି କଥା କହିଲେ, 'ଝଟକ ମଣି ସହିତରେ ମୋର ସାକ୍ଷାତ କରାଇଦେବ ।' ଧାଈ କହିଲା, ଏ ଓଡ଼ଜ ଘୋଡ଼ାଶାଳ ଅଛି ସେହିଠାରେ ଝଟକମଣି ସହିତ ଆପଣଙ୍କ ସାକ୍ଷାତ କରାଇଦେବ ।' ତଦନୁସାରେ ଉଭୟଙ୍କର ନିର୍ଦ୍ଦିଷ୍ଟ ସ୍ଥାନରେ ସାକ୍ଷାତ ହେଲା । ତହିଁ ଅରଦିନ ଯଦୁମଣି ନିମ୍ନୋକ୍ତ କବିତାଟି ଲେଖି ଶ୍ୱଶୁରଙ୍କୁ ଦେଲେ—

ଝଟକମଣିକି ଅଟକ ଯା କଲ, ଛଟକେ ତାକୁ ଦେଖିଲି
ଘୋଟକ ଶାଳରେ ବିଜୟ ହୋଇଣ ପରିହାସ କେତେ କଲି ।

(୫୪) ଦିନେ ନୟାଗଡ଼ ରାଜା ଯଦୁମଣିଙ୍କୁ କହିଲେ, "କାଲି ଅମ୍ଭେ ସ୍ୱପ୍ନରେ ଦେଖିଲୁ, ତୁମ୍ଭ ଦେହରେ ବିଷ୍ଠା ବୋଳା ହୋଇଅଛି । ତହୁଁ ଯଦୁମଣି କହିଲେ, ମୁଁ ମଧ୍ୟ ସ୍ୱପ୍ନ ଦେଖିଥିଲି ମୋ ଦେହରେ ବିଷ୍ଠା ଓ ଆପଣଙ୍କ ଶ୍ରୀଅଙ୍ଗରେ ମହାପ୍ରସାଦ ବୋଳା ହୋଇଅଛି, ମାତ୍ର ଆପଣ ମୋ ଦେହକୁ ଏବଂ ମୁଁ ଆପଣଙ୍କ ଶ୍ରୀଅଙ୍ଗକୁ ଚାଟି ପକାଉଅଛୁ ।

(୫୫) ଅଉ ଦିନେ ରାଜା ଯଦୁମଣିଙ୍କୁ କହିଲେ—

ଯଦୁମଣି ତୁ କୁକୁର ।

ଯଦୁମଣି କହିଲେ—ଆପଣ ତୁଳସି ଗଛ ।

—ସ ମା ପ୍ତ—

ମୁଦ୍ରାକର—ଶ୍ରୀ ନରସିଂହ ଚରଣ ପାଣ୍ଡେ, ସୁଧା ପ୍ରେସ, କଟକ